# ଆମେ ଭାରତୀୟ

୦୧୩

ମେହରୁ କେ. ଓ୍ୱାଡିଆ

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

1984 (*Saka* 1906)



REVISED PRICE Rs.5.00

WE INDIANS (*Oriya*)



Published by the Director, National Book Trust, India, A-5 Green Park, New Delhi 110 016
and printed at Indraprastha Press (C.B.T.), 4 Bahadur Shah Zafar Marg, New Delhi 110 002

ନେହେରୁ ବାଳ ପୁସ୍ତକାଳୟ

# ଆମେ ଭାରତୀୟ



ଲେଖା ଓ ଚିତ୍ର : ମେହରୁ ଜେ. ଓ୍ୱାଡିଆ

ଅନୁବାଦ : ବାଳକୃଷ୍ଣ ପଣ୍ଡା





ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ମୋର ନାମ ମୀନାକ୍ଷି ।

ଘର ମୋର ତାମିଲ ନାଡ଼ୁରେ ।

ମୁଁ ତାମିଲ କହେ ।

ପୋଙ୍ଗାଲ ପର୍ବ ମୋତେ ଭାର ଭଲ ଲାଗେ ।

ତୁମର ନାମ କ'ଣ ?

________________





ମୁଁ ହେଉଛି ରାମୁ ପଟେଲ ।
ଗୁଜରାତରେ ମୋର ଘର ।
ମାତୃଭାଷା ଗୁଜରାତୀ ।
ବେଳେ ବେଳେ ମୁଁ ଗାରବା ନାଚ କରେ ।
ବୟସ ମୋର ମାତ୍ର ସାତ ବର୍ଷ ।

ତୁମର ବୟସ କେତେ ?

________________





ନାଁ ମୋର ଗୁଲାବୋ ।

ଘର ରାଜସ୍ଥାନରେ ।

ରଙ୍ଗ ରଙ୍ଗିଆ ପୋଷାକ ପିନ୍ଧିବାକୁ ଖୁବ ଭଲ ଲାଗେ ।

କଣ୍ଢେଇ ନାଚ ଦେଖିଲେ ମୋତେ ଆନନ୍ଦ ଲାଗେ ।

ମୁଁ ଓଟ ପିଠିରେ ବୁଲି ଯାଏ ।

ତୁମେ କେମିତି ଯିବା ଆସିବା କର ?

____________________





ବଙ୍ଗ ପ୍ରଦେଶରେ ମୋର ଘର ।

ମୋର ନାମ ବାଦଲ ଘୋଷ ।

ବଙ୍ଗଳାରେ ମୁଁ କଥାବାର୍ତ୍ତା କରେ ।

ଚିତ୍ର ଆଙ୍କିବା ଓ ଗୀତ ଗାଇବା ମୋର ପସନ୍ଦ ।

ଜାଣିଛ ! ମୁଁ ଶାନ୍ତିନିକେତନରେ ପଢୁଛି ।

ତୁମେ କେଉଁଠି ପଢୁଛ ?

____________________





ମୁଁ ହେଉଛି ଭିଠା ।

ମହାରାଷ୍ଟ୍ରରେ ମୋର ଘର ।

ମରାଠୀ ମୋର ମାତୃଭାଷା ।

କିନ୍ତୁ ବମ୍ବେରେ ମୋର ପଡୋଶୀମାନେ

ହେଉଛନ୍ତି ଅସମୀୟା ।

ସେମାନଙ୍କର ଘର ଆସାମରେ ।

ତୁମର ଘର କେଉଁଠି ?

___________________



ମୋର ନାମ ସୁରନ୍ଦର ।

ମୁଁ ହେଉଛି ପଞ୍ଜାବର ବାସିନ୍ଦା ।

ପଞ୍ଜାବୀ କହେ ।

ମୋର ପଡ଼ୋଶୀ,ଅମରଜିତ୍ ସିଂହ

ଭାଙ୍ଗଡା ନାଚ କରେ ।

ତୁମକୁ କେଉଁ ନାଚ ଭଲ ଲାଗେ ?

____________________












ମୁଁ ହେଉଛି ନରଜ ତ୍ରିପାଠୀ ।

ଘର ମୋର ଉତ୍ତର ପ୍ରଦେଶରେ ।

ମୁଁ ହିନ୍ଦି କହେ ।

ଜାଣିଛ ! ମୋର ସାଙ୍ଗ, ତାରକ୍ ବେଗ

ମୋତେ ଉର୍ଦ୍ଦୁ କହିବା ଶିଖାଉଛନ୍ତି ।

ତୁମେ କେଉଁ ଭାଷାରେ କଥାବାର୍ତ୍ତା କର ?

______________________________



ମୋର ନାମ ଉନ୍ନିକ୍ରିଷ୍ଣନ୍ ନାୟର୍ ।

କେରଳରେ ମୋର ଘର ।

ମଲୟାଲମ୍ ମୋର ମାତୃଭାଷା ।

ମୁଁ କଥାକାଳି ନାଚ ଶିଖୁଛି ।

ନଡ଼ିଆ ଗଛ ଦେଖିଲେ ମୋତେ ଭାରି ଆନନ୍ଦ ଲାଗେ ।

ତୁମେ କେଉଁ ଗଛକୁ ଭଲ ପାଅ ?

____________________



କମଳା ମୋର ନାମ ।

କର୍ଣ୍ଣାଟକରେ ମୋର ଘର ।

ମୁଁ କନ୍ନଡ଼ ଭାଷାରେ କହେ ।

ମୃଦଙ୍ଗ ବଜାଇବା ମୋର ଅଭ୍ୟାସ ।

ତୁମେ କୌଣସି ବାଦ୍ୟଯନ୍ତ୍ର ବଜାଇବା ଶିଖିଛ କି ?

______________________________





ମୋର ନାଁ ଭାରତୀ ।

ଆନ୍ଧ୍ର ପ୍ରଦେଶରେ ମୁଁ ରହେ ।

ତେଲୁଗୁ ଭାଷାରେ କଥାବାର୍ତ୍ତା କରେ ।

ମୁଁ ପ୍ରତିବର୍ଷ ଗ୍ରୀଷ୍ମ ଛୁଟିରେ କାଶ୍ମୀର ଯାଏ ।

ସେଠାରେ ମୋର ଦୁଇ ଜଣ ସାଙ୍ଗ ଅଛନ୍ତି,

ସଲମା ଓ ସୁଲେମାନ

ସେମାନଙ୍କ ସାଙ୍ଗରେ ରହେ ।

ତୁମର ଛୁଟି ତୁମେ କେଉଁଠି ବିତାଅ ?

________________________________



ଆମେ ହେଉଛୁ ଦୁଇ ଭଉଣୀ ।
ଓଡ଼ଶାରେ ଆମର ଘର ।
ଓଡ଼ଆ ଭାଷା ଆମେ କହୁ ।
ଆମ ଘରର ବାହାର ଭିତର
ଆଙ୍ଗୁଠି ସାହାଯ୍ୟରେ ଚିତା ଦେଇ
ଆମେ ସଜାଇ ଥାଉ ।

ତୁମର କେତୋଟି ଭାଇ ଭଉଣୀ ?

---







ମାତ୍ର ଯାହା ହେଉ ନା କାହିଁ କି

ଆମେ ସମସ୍ତେ ଭାରତ ମାତାର ସନ୍ତାନ ।